କରିଲୋ -ପାଠଣା

# କ୍ଷେତ୍ରପାଳଙ୍କ ଜଣାଣ ।

ଶ୍ରୀ ଗୋପୀନାଥ କେନାଙ୍କ ଦ୍ୱାରା
ରଚିତ ଓ

ପ୍ରଥମବାର ପ୍ରକାଶିତ ।



Printed by M. Ch. Das.
AT THE MANOMOHAN PRESS.
4B, CROUCH LANE,
CALCUTTA.
1923.

ମୂଲ୍ୟ ଟ ୦ /୧ ପାଞ୍ଚପଇସା ମାତ୍ର ।

କରିଲୋ-ପାଠଣା

# କ୍ଷେତ୍ରପାଳଙ୍କ ଜଣାଣ ।

( ବନ୍ଦନା ସଙ୍ଗୀତ ।)

( ରାଧେ ତୋହଲାଗି, ଶ୍ୟାମ କି ବଞ୍ଚିଇ ଗୋ ଜେମାଦେଇଙ୍କ ବଚ୍ଚେ )

ଦେଖୁ ଦେଖୁ କାଲ, କରୁଛି ବିରଲ ହେ କ୍ଷେତ୍ରପାଳ । ପଦ ।

ଅଥଳ ଅଟେ ଏ ସଂସାର ବାରିଧି
ତୁମ୍ଭ କୃପାବଳ ହେବ ସର୍ବ ସିଦ୍ଧି
ତୋ ଅମ୍ବୁଜ ଚରଣ, ଆମ୍ଭର କାରଣ
ଶରଣ ପଶିଛୁଁ ପଦତଳ । ୧ ।

ସୁଖେ ଦୁଃଖେ ତୋର ଅଭୟ ନାମକୁ
ଜପିଣ ନିର୍ଭୟେ ଲଭୁ ସମ୍ପଦକୁ,
ବ୍ୟାଧିର ଔଷଧି, ତୋ ନାମ ନିରବଧି
ଦମ୍ଭ ଧରି ତୋ ଆଶ୍ରା କେବଳ । ୨ ।

ସୁଦୟା ପ୍ରକାଶି ତାରୁଛ କାଳକ ।
ସେଥିଯୋଗୁ ନାମ ବହୁଛ ପାଳକ ।
ଘୁଞ୍ଚାଅ ବାରେକ, ଆମ୍ଭ ମନଦୁଃଖ
କାଟିଦିଅ ଗୋପୀର ଜଞ୍ଜାଳ । ୩ ।

( ଜଣାଣ )
( କନ୍ଦର୍ପସୁରଙ୍କୁ ମାଣ୍ଡ ଇଚ୍ଛାନ୍ତରେ ରହ—ବୃତ୍ତେ )

କର କରୁଣା କାଳକେ ଅସାଧ୍ୟ ସାଧ୍ୟମି
କହବି ଶ୍ରୀ କ୍ଷେତ୍ରପାଳ ଜଣାଣ କାହାଣି ହେ ।
କବ୍ଲୋରେ,
ବିଜେ ପ୍ରଭୁ ପୋତାନଦୀ କୂଳେ ହେ । ୧ ।

ଖଣ୍ଡିବ ବୋଲ ମୋ ଦୁଃଖ ଅଛ ଆରତରେ
ଖଟାଇଛି ମୋର ମନ ତୋ ପଦ ପ୍ରାନ୍ତରେ ହେ ।
କ୍ଷେତ୍ରପାଳ,
ଖରେ ମୋର ଦୁଃଖକୁ ସଂହାର ହେ । ୨ ।

ଗତ ମୁକ୍ତିଦାତା ପ୍ରଭୁ ଶରଣ ତୁମ୍ଭର,
ଗଢ଼ିବ ବିନତ ଯେନ ଆହେ କୃପାକର ହେ ।
ଗଲା ପ୍ରାଣ,
ଦର୍ପିଜନ ଦର୍ପ ବିନାଶନ ହେ । ୨ ।

ଆସ୍ଥାନ ତୋ ଥିଲା ପୂର୍ବେ ନାହାଖଣ୍ଡ ଗ୍ରାମେ
ସେବକଙ୍କୁ ସ୍ୱପନାଇ ଅଇଲୁ ଏ ସ୍ଥାନେ ହେ ।
ଦୟାଶୀଳ,
ନାଶକର ମୋ ଦୁଃଖ ଜଟିଳ ହେ । ୪ ।

ଦକ୍ଷିଣ ଦିଗକୁ ପ୍ରଭୁ ଦୃଷ୍ଟି ଦେଇଅଛ
ଦମ୍ଭୀ ଲୋକଙ୍କ ଗାରିମା ଦଣ୍ଡକେ ଭାଙ୍ଗୁଛ ହେ ।
କୃପାମୟ,
ଚାହୁଅଛୁ ତୋ ପଦ ଆଶ୍ରୟ ହେ । ୫ ।

ଅଶ୍ୱ ବାହାନରେ ବିଜେ କର ଭ୍ରମଣରେ,
ଶଙ୍କଟ କାଳରେ ଜନେ ଡାକିଲେ ବଣରେ ହେ ।
ତରିଯିବ,
ତବ କୃପା ତାହାଙ୍କୁ ହୋଇବ ହେ । ୬ ।

ଶ୍ରୀ ମହାକ୍ଷେତ୍ରରେ ପ୍ରଭୁ ହେଲ ଦ୍ୱାରପାଳ,
ବିଶ୍ୱରେ ବହୁଛ ଦେବ ନାମ କ୍ଷେତ୍ରପାଳ ହେ ।
ମହିମାକୁ,
ନାହିଁ ମୋ ଶକତି ବର୍ଣ୍ଣିବାକୁ । ୭ ।

ଭୈରବ ମୂରତି ଧରି ବିଜେ କରିଅଛ,
ତରିଯିବ ଦୂରରୁ ଦେଖିଲେ ଜଗନ୍ନାଥ ହେ ।
ଦୟାକର,
ଦୁଃଖିଜନେ ଦୁଃଖରୁ ଉଧାର ହେ । ୮ ।

ଜପିବି ତୋ ନାମ ପ୍ରଭୁ ଦିବସ ରଜନୀ ।
ତବ ଅସୀମ ମହିଁମା ଅଛୁ ପଢ଼ି ଗୁଣି ହେ ।
ଶଙ୍ଖଧର,
ଚନ୍ତ୍ରା ପଙ୍କ ବାରେକ ଉଦ୍ଧାର । ୯ ।

ଡ଼ୋରି ଲଗାଇଲି ପଦେ ଛାଡ଼ି ସବୁ ଆଶା
ଢାଙ୍କି ରଖ ବାହୁତଳେ ଉଡ଼ିଲାଣି ହଁସା ହେ ।
ଯେତେ ଯୋଷା,
ତୋହଠାରେ ରଖନ୍ତୁ ଭରସା ହେ । ୧୦ ।

ତୁ ନ ରଖିଲେ ଅରକ୍ଷ ହେଲୁଁ ପ୍ରଭୁ ଜାଣ
ଭୃଙ୍ଗ ରାଜିବ ଚରଣ କରିଅଛୁ ଠାଣ ହେ ।
ମହାବାହୁ,
ଭଣି ଯିବୁଁ ତୁମେ ଥାଉଁ ଥାଉଁ । ୧୧ ।

ଶଇଳ-ତରଙ୍ଗା ବାଲା ଗଳାମାଳା ପରି,
ଅଚଳା ଭକ୍ତି ରଖନ୍ତୁ ଏକ ଧ୍ୟାନେ ବରି ।
ସ୍ନାନବେଳ,
ପ୍ରଲମ୍ବ କୁନ୍ତଳା ହୋନ୍ତୁ ଫୁଲ । ୧୨ ।

ଅତ୍ୟନ୍ତ ଭକ୍ତି ନରେଖି ଥିଲେ ତୋ ହୃଦୟ,
ମନବାଞ୍ଛା ପୂର୍ଣ୍ଣ କରୁ ହୋଇଣ ସଦୟ ହେ ।
ମୁଁ ଅଜ୍ଞାନୀ,
କି ବର୍ଣ୍ଣିବ କିଞ୍ଚିତେ କାହାଣୀ ହେ । ୧୩ ।

ଶରଣ ରକ୍ଷକ ତ୍ରାଣ ପତି ତୋର ବାହା,
କାରଣ ନ କଲେ ମୋର ନାହିଁ ଅନ୍ୟ ରାହା ହେ ।
ପଣ ମୋର,
ଚରଣ ସେବିବି ଅହରହ ହେ । ୧୪ ।

କହିଲେ ପାଷାଣ ବାସି ଅଛ ଆନନ୍ଦରେ,
ତୋ ସେବାରେ ଲାଗି ରହିଛନ୍ତି ଅକାତରେ ।
କ୍ଷମା କରୁ,
ବିପଦ ଘୁଞ୍ଚାଇ ପତି ତାରୁ । ୧୫ ।

ରୋଗ, ଶୋକ, ବିପଦରେ ତୋର ନାମ ଜପି,
କରୁଛୁ କାଳଯାପନ ହୋଇ ଅଛ ସୁଖି ହେ ।
ତୋର ଆଶ୍ରା,
ଅବିରତେ କରିଅଛୁ ଆଶା ହେ । ୧୬ ।

ତୁରଙ୍ଗାରୋହଣେ ପ୍ରଭୁ ଲୀଳା ଲଗାଇଛ,
ଅଶକ୍ତ ଜନଙ୍କ ଶଙ୍କା କ୍ଷଣକେ ଦେଉଛ ହେ ।
ତୋର ଦୟା,
ହୋଇଲେ ଡ଼ରିବ ଜନୁନାହା ହେ । ୧୭ ।

କରୀଏ ଯେ ପ୍ରଭଦ୍ଧନା ତୋହର ସ୍ନାହାନ,
ସୁ ପ୍ରସନ୍ନେ ବର ଦେଉ ଲଭଇ ସନ୍ତାନ ହେ ।
ସୁଖ ଭୋଗ,
କରଇ ସେ ଲଭଇ ଆରୋଗ୍ୟ ହେ । ୧୮ ।

ତୋ ପଦ୍ମରେ ଭକ୍ତ ସଦା ଯେହୁ ରଖିଥିବ,
ବ୍ୟାଧିମୁକ୍ତ ହୋଇ ଆନନ୍ଦରେ ବିହରିବ ହେ ।
କ୍ଷମାଶୀଳ,
କେଶ ଧରିଲାଣି ଆସି କାଳ ହେ । ୧୯ ।

ନବକାଳିକା ନିରେଖି କଲାପୀ ଯେସନ,
ଉଲ୍ଲାସରେ ନାଚଣ କରନ୍ତେ କରେ ସ୍ୱନ ହେ ।
ସେହୃପରି,
ଆମ୍ଭେ ତବ ଦୟାକୁ ସୁମରି । ୨୦ ।

ପ୍ରଦୋଷ ଆଳତିବେଳେ କରିଲେ ଦର୍ଶନ,
ମାନସିକ ପାପ ସବୁ ହୋଇବ ମୋଚନ ହେ ।
କ୍ଷମାଶୀଳ,
ସୁମରିଲେ ହୁଏ ନବ ବଳ ହେ । ୨୧ ।

ଜାଣ ତୁମ୍ଭେ ଅନ୍ତର୍ଯାମୀ ମୋର ସବୁ ଦୁଃଖ,
ରହୁ ନାହିଁ ଅଙ୍ଗ ତାହା ଚିନ୍ତିଲେ ବାରେକ ।
କୃପାମୟ,
ଫେଡ଼ କଷ୍ଟ ଦେଇଣ ଅଭୟ । ୨୨ ।

ଧନ୍ୟ ସେ ଦାରୁଗା ବାବୁ ବଡ଼ ପୁଣ୍ୟବାନ,
ଖଞ୍ଜାଇଛନ୍ତି ଖଟଣି ପରି ରାସ ଧନ ହେ ।
ଦେଖି ତାହା,
ବୋଲୁଛନ୍ତି ଭକ୍ତେ ବାହା ବାହା ହେ । ୨୩ ।

ବେସ ହସ୍ତେ ବାନ୍ଧି ପୃଷ୍ଠେ ଯାଅ ଭ୍ରମଣକୁ,
ସ୍ୱସ୍ଥ ହୋଇ ଜନେ ଭଜେ ଚିନ୍ତି ପଦକୁ ।
ପ୍ରଭୁରକ୍ଷ,
କ୍ଷଣକରେ ହରୁ ସବୁ ଦକ । ୨୪ ।

ତୋ ପାଣି ଗାଧୁଆ ଦ୍ରବ୍ୟ ଯେତ୍ନ ବଳେ ଧଏ,
କାଳେ କାଳେ ମୁକ୍ତି ହୋଇ କାଳ ମୁଖୁଁ ରହେ ।
ଭିନ୍ନ ଗୁଣ,
ଟଳିଯିବ ନଷ୍ଟେ ଅଙ୍ଗମଳ ହେ । ୧୫ ।

ଦୋଳପୂର୍ଣ୍ଣିମାକୁ ତୋର ଝୁଲଣ ବିଖ୍ୟାତ,
ଗ୍ରାମଜନେ ହର୍ଷଭରେ କରନ୍ତି ସମାପ୍ତ ।
ଭକ୍ତିଭରେ,
ସେବନ୍ତି ତୋ ଅଭୟ ପଦ୍ମରେ ହେ । ୧୬ ।

ବଡ଼ ଶୋଭାମୟ ପ୍ରଭୁ ତୋର ପୀଠ ସ୍ଥାନ,
ବିରାଜୁଛି ପୁଣି ଅଗ୍ରେ ଚ୍ୟୁତ ବୃକ୍ଷମାନ ହେ ।
ତରଙ୍ଗିଣୀ,
ପାଶେ କରେ କୁଳୁ କୁଳୁ ଧ୍ୱନି ହେ । ୧୭ ।

ନିଭୃତ ସ୍ଥାନରେ ବସି କରୁଣା ବିତର,
ଧନୀ ଦୁଃଖିମାନେ ତୋତେ ସେବି ନିରନ୍ତର ।
ପାନ୍ତି ସୁଖ,
ପାଶୋରନ୍ତି ଦଣ୍ଡକରେ ଦୁଃଖ । ୧୮ ।

କହିବାକୁ ନାହିଁ ଆଉ ବେଳ ପରା ମୋତେ,
ଦଣ୍ଡ ଦେଖାଉ ଅଛନ୍ତି ଦଣ୍ଡଧର ଦୂତେ ହେ ।
କ୍ଷୀରବାର୍ଦ୍ଧି,
ଦର୍ଶିବେକି ତୁମ୍ଭେ ଥାଉଁ ଥାଉଁ । ୨୯ ।

ହୃଦୟ ଅମ୍ବରେ ଜଳଧର ଘୋଟିଲାଣି,
ମନ କ୍ଷଣଦା ପରାୟେ କ୍ଷଣେ ଖେଳିଲାଣି ।
ବଜ୍ରପାତ,
ସ୍ମୃତି ପଥେ ହୁଏ ଅକସ୍ମାତ୍ । ୩୦ ।

ସତେ କି ବେନି ଲୋଚନୁ ନୀର ବର୍ଷିବ,
ତବ ଦୟା ପ୍ରଭଞ୍ଜନ ନିମିଷେ ବହିବ ।
ହେବ ଶୂନ୍ୟ,
କହାଇବୁ ମୁଖେ ଅମ୍ଭେ ଧନ ହେ । ୩୧ ।

କରୁଣା-ନିଧାନ ପ୍ରଭୁ ଦରିଦ୍ର ବାନ୍ଧବ,
ଅକରୁଣା ହେଲେ ନିନ୍ଦା ତୁମ୍ଭଙ୍କ ହୋଇବ ହେ ।
ବଡ଼ ଆଶା,
ନିଇତେ ଚରଣ ତୋର ଆଶା ହେ । ୩୨ ।

ରସା ଦୁଃଖ ପ୍ରଭୁ ପର ଅଭବ ଜଟିଲ,
କଟାଇବୁ ସୁଖେ ଭବ ତୋ ପଦଯୁଗଳ ।
ଭକ୍ତବଳ,
ଡ଼ରଉଛି ଏ କାଳ କରାଳ ହେ । ଘୋ ।

କ୍ଷମା କର ଅପ୍ରାଧକୁ ଅଟହେ କ୍ଷମାଶୀଳ,
କ୍ଷିଆଳ ନ କରି କିଛି ଭଟଳ କେବଳ ହେ ।
କ୍ଷେତ୍ରପାଳ,
ସୁଖେ ଗୋପୀନାଥ କାହୁଁ ବେଲ ହେ ।

ଇତି ଶ୍ରୀ କ୍ଷେତ୍ରପାଳଙ୍କ ଜଣାଣ ସମାପ୍ତ ।



କଲିକତା ମନ-ମୋହନ ପ୍ରେସରେ
ଶ୍ରୀମୋହନ ଚରଣ ଦାସଙ୍କ ଦ୍ୱାରା ମୁଦ୍ରିତ ।

# ବିଜ୍ଞାପନ ।

ନିମ୍ନଲିଖିତ ଠିକଣାରେ ଏହି ଜଣାଣ ପୁସ୍ତକଟି ମିଳିପାରିବ ।

କଢ଼ିଲୋ-ପାଟଣା—

ଅପରପ୍ରାଇମେରି ସ୍କୁଲ ଏବଂ

ନ ୨ ମ୍ବର ହାଜରା ଲେନ, କାଳୀଘାଟ, କଲିକତା ।